# ବଣ ରାଇଜ





ଫଣୀନ୍ଦ୍ର ଭୂଷଣ ନନ୍ଦ



# ବଣ ରାଇଜ

ଫଣୀନ୍ଦ୍ର ଭୂଷଣ ନନ୍ଦ

ପ୍ରକାଶକ :
ଅଗ୍ନି
୧୦୪୬-ଡି, ଚଣ୍ଡିମାତା କଲୋନୀ,
ଉତ୍କଳଗଡ଼, ଭୁବନେଶ୍ୱର-୭୫୧୦୧୦

ପ୍ରଥମ ସଂସ୍କରଣ :
ବାହୁଡ଼ା - ୨୦୦୮

ମୁଦ୍ରଣ :
ଅପୂର୍ବା ଅଫ୍‌ସେଟ୍, ଭୁବନେଶ୍ୱର

ପ୍ରଚ୍ଛଦ :
କ୍ଷୀରୋଦ ଚନ୍ଦ୍ର ପତି

ମୂଲ୍ୟ :
୨୦ ଟଙ୍କା ମାତ୍ର

**BANA RAIJA**
by **Fanidra Bhusan Nanda**
**Publisher : Agni**, Bhubaneswar
**First Edition :** Bahuda, 2008
**Printed at :** Apurba Off-Set, Bhubaneswar
**Cover Design :** Kshirod C. Pati
**Price :** Rs. 20/- (Twenty only)

# ଉତ୍ସର୍ଗ

ବଣକୁ...
ଓ
ବଣକୁ ଭଲ ପାଉଥିବା
ଶିଶୁମାନଙ୍କୁ

-ଫଣୀନ୍ଦ୍ର ଭୂଷଣ ନନ୍ଦ

# କବିତା ପୂର୍ବରୁ ପଦେ

ଶିଶୁମାନେ ଯେଉଁଠି ପାଦ ଦିଅନ୍ତି ସେଠି ସ୍ୱର୍ଗ ଓହ୍ଲାଏ । ମାଟି ହସି ଉଠେ । ଗଛରେ ଫୁଲ ଫୁଟେ । ଶିଶୁଙ୍କ ଖେଳରେ ଦେବତାମାନେ ସାମିଲ ହୁଅନ୍ତି । ଶିଶୁମାନଙ୍କୁ ଚାହିଁଦେଲେ ଦୁଃଖ, ଶୋକ ଉଭେଇଯାଏ । ସେମାନେ ଅମୃତର ସୃଷ୍ଟି ।

ଶିଶୁଙ୍କ ପରି ବଣ, ଜଙ୍ଗଲ, ପଶୁ, ପକ୍ଷୀ ମଧ୍ୟ ନିରୀହ, ଅମୃତମୟ । ବଣକୁ ଚାହିଁଲେ ହୃଦୟର ବ୍ୟଥା ଚାଲିଯାଏ । ମନରେ ପୁଲକ ଜାତ ହୁଏ । ବଣ ରାଇଜର କଥାକୁ ଶିଶୁଙ୍କ ଭାଷାରେ, ଶିଶୁଙ୍କ ପାଇଁ ଲେଖା ଯାଇଛି । ଏ ସଂକଳନଟି ଶିଶୁମାନଙ୍କ ମନକୁ ପାଇଲେ ଶ୍ରମ ସାର୍ଥକ ହେବ ।

-ଫଣୀନ୍ଦ୍ର ଭୂଷଣ ନନ୍ଦ

# ସୂଚୀପତ୍ର

❑❑



# ବଣ

ଶୁଣରେ ପିଲେ ଶୁଣ
ଗଛ ପତର ପଶୁ ପକ୍ଷୀରେ
ସୁନ୍ଦର ଦିଶେ ବଣ ।

ହାତୀ ଅଜାର ଚାଲି
କାହାକୁ ତା'ର ଖାତର ନାହିଁ
ଆସଇ ଝୁଲି ଝୁଲି ।

ବାଘ ମାମୁଁର ନିଶ
ମୁହଁ ଫୁଲାଇ ଗରଜି ଆସେ
ନ ଯିବ ତା'ର ପାଶ ।

ଭାଲୁ ମଉସା ଆସେ
ଉଇ ଟାକୁଆ ମହୁଲ ଖାଇ
ଆଖୁ ବାଡ଼ିରେ ପଶେ ।

ହରୀଣ ଭାଇ ଖେଳ
କନ କନିଆ ଛୁଆ ସାଥିରେ
ଏକାଠି ହୁଏ ମେଳ ।

ଠେକୁଆ କାନ ଠିଆ
ବଣ ଭିତରେ ମଉଜ ତା'ର
ଫୁକୁଲୁ ଫୁକୁ ଡିଆଁ ।



ହେଇ ବିଲୁଆ ନନା
ପିଲାଏ ତୋତେ ଦେଖିବେ ପରା
ପଛକୁ ଟିକେ ଅନା ।

ଶୁଣରେ ପିଲେ ଶୁଣ
ପଶୁ ପକ୍ଷୀଙ୍କୁ ସେନେହ କଲେ
ବଢ଼ିବ ଆମ ବଣ ।



# ବଣ ରାଇଜ



ବଣ ରାଇଜର ବଡ଼ ହୁନ୍ଦର
ପଶୁ ପକ୍ଷୀ ଗଛ ଲତା ସୁନ୍ଦର ।

ହନୁ ଅଜା ଆସ ଆସ ଡାକଇ
ଗଛ ଡ଼ାଳେ କୋଇଲିଟି ରାବଇ ।

ବାଘ ମାମୁଁ ଅଟେ ବଣ ରଜାଟି
ନିଶ ଫୁଲା ତାର କେଡ଼େ ମଜାଟି ।

ହାତୀ ଆସେ ଢ଼ଳି ଢ଼ଳି ସଅଳ
ଭାଙ୍ଗିଖାଏ ଡାଳ ପତ୍ର ବକଳ ।



ଗଛ ଲତା ଭରା ଫୁଲ ଫଳରେ
ଜଳଚର ଜୀବ ନଦୀ ନାଳରେ ।

ବାଘ ଭାଲୁ ହାତୀ ସାପ ନେଉଳ
ସବୁ ସାଙ୍ଗ ଏଠି ସବୁ ବଉଳ ।

ଗଛ ଡାଳେ ଶୁଆ ସାରୀ ଥାଆନ୍ତି
ମନ ମଉଜରେ ଗୀତ ଗାଆନ୍ତି ।

ଦେଖ ପିଲା ମାନେ ବଣ ସଂପଦ
ବଣ ଉଜୁଡ଼ିଲେ ଆସେ ବିପଦ ।



# ବଣର ଗୀତ

ଫୁରୁ ଫୁରୁ ଡିଏଁ ହରୀଣ ଛୁଆ
କନ କନ  କାନ କରେ ଠେକୁଆ ।

ଝୁଲି ଝୁଲି  ହାତୀ ମାଡ଼ି ଆସଇ
ଅଙ୍କା ବଙ୍କା ହୋଇ ସାପ ଚାଲଇ ।

ପଟା ପଟା ଦାଗ ବାଘ ଦେହରେ
ଜୁଳୁ ଜୁଳୁ ପେଚା ଚାହେଁ ରାତିରେ   ।



କୁହୁ କୁହୁ ଗୀତ କୋଇଲି ଗାଏ;
ହୁକ୍ ହୁକ୍ ବାଜା ମାଙ୍କଡ଼ ବାଏ ।

ଧପ୍ ଧପ୍ ଭାଲୁ ଚାଲେ ସଅଳ
ହୁଉଁ ହୁଉଁ ହନୁ ଭାରି ମଙ୍ଗଳ ।

କକ୍ କକ୍ କୁକୁଡା ରାବେ
ସାଇଁ ସାଇଁ ଗୀତ ବଣରୁ ଶୁଭେ ।



# ପଶୁପକ୍ଷୀଙ୍କ ଡାକ

ବାଘ ଗରଜେ ଘାଉଁ ଘାଉଁ
ବିଲେଇ ମ୍ୟାଉଁ ମ୍ୟାଉଁ
ବିଲୁଆ ଡାକେ ହୁକେ ହୋ
ମାଙ୍କଡ଼ ହୁଁଉ ହୁଁଉ ।



କୁକୁର ରଡ଼ି ଭୋଅ ଭୋଅ
କୁଟୁରା କ୍ୱକ କ୍ୱକ
ସକାଳ ହେଲେ ଡାକେ କୁକୁଡ଼ା
କକ୍‌ରେ କକ୍ କକ୍ ।



ଭାଲୁର ଡାକ ହୁଃ ହୁଃ
ମୟୂର କିଓ କିଓ
ଘୁମ୍ ଘୁମ୍ ଘୁମରେ ପାରା
ଚଟିଆ ଚିଅଁ ଚିଅଁ ।

କୋଇଲି ଗୀତ କୁହୁ କୁହୁ
ଶୁଭେ ମଧୁର ଅତି
କାଉ ରାବଇ କାଆ କାଆ
ପାହଇ ଯେବେ ରାତି ।



# ଗଛ ଲଗାଇବା କାହିଁକି ?



ଗଛ ଲଗାଇବା କାହିଁକି
କୁନା ପଚାରିଲା ଆଈକି
ଆଈ କହିଦେଲା କୁନାରେ
ଅଜାଙ୍କୁ ପଚାର ଯାଇକି ।

ଅଜା ଯାଇଥିଲେ ନଈକି
ଫେରୁଥିଲେ ନଇଁ ନଇଁକି
କୁନା ପଚାରିଲା ଅଜାଙ୍କୁ
ଗଛ ଲଗାଇବା କାହିଁକି ?

ଅଜା କହିଦେଲେ ହସିକି
ମଣିଷ ସମାଜ ପାଇଁକି
ପରିବେଶ ସଫା ରହିବ
ଗଛ ଲଗାଇବା ସେଥିକି ।

ଅନା କୁନା ଗଛ ଛାଇକି
ଆଶ୍ରା ଦିଏ ସିଏ ସଭିଙ୍କି
ଫଳ ମୂଳ ପତ୍ର ତାହାର
ବାଣ୍ଟିଦିଏ ପଶୁପକ୍ଷୀଙ୍କି ।

ଅମ୍ଳଜାନ ଗଢ଼ି ଦେଇକି
ଦୂଷିତ ପବନ ନେଇକି
ଗଛ ଦିଏ ପରା ଜୀବନ
ବହିରେ ତୁ ପଢ଼ି ନାହୁଁକି ?

ସୁରୁଜ କିରଣ ଟାଣିକି
ମାଟିରୁ ଆଣଇ ପାଣିକି
ଗଢ଼ି ଦିଏ ଖାଦ୍ୟ ପଦାର୍ଥ
ସାରା ସଂସାରକୁ ଜାଣିକି ।

ଗଛ ବଢ଼ିଥାଏ ଯହିଁକି
ନିରିମଳ ପାଣି ତହିଁକି
ଜଙ୍ଗଲ ବିହୁନେ ବିପଦ
ମଣିଷ ଜୀବନ ପାଇଁକି ।



# କେହି କହନ୍ତିନି ଗଛ ମୋର

ଗଛ ବୋଲେ ମୁହିଁ ତୋର ତୋର
କେହି କହନ୍ତିନି ମୋର ମୋର ।

ତୁମ ପାଇଁ ମୋର ଫୁଲଫଳ
ସଫା କରେ ନଭ ଜଳ ସ୍ଥଳ ।

ଗଢ଼ି ଦିଏ ନୂଆ ପରିବେଶ
ନଈ ପୋଖରୀର ସମାବେଶ ।

ବାୟୁ ମଣ୍ଡଳର ହରେ ବିଷ
ରୋକେ ତୋଫାନର ସର୍ବନାଶ ।

ପଶୁ ପକ୍ଷୀ ପାନ୍ଥେ ଆଶ୍ରା ଦିଏ
ବାଟୋଇ ଭାରର ଦୁଃଖ ନିଏ ।

ମୃତ୍ତନ ଦେହୁ ଶକତି ଟାଣି
ଗଢ଼ି ଦିଏ ଖାଦ୍ୟ ଦେଶ ଚାଣି ।

ସଭିଙ୍କର କରେ ଉପକାର
କେହି କହନ୍ତିନି ଗଛ ମୋର ।





# ଗଛ ମୋର ସାଥୀଟି



ଗଛ ମୋର ସାଥୀଟି
ତମରି ମୁହିଁ କେତେକ ସାଥୀ
ତମରି ହିତେ ଥାଏଟି ।

ମୋ ଫୁଲ ଫଳ ତମରି ପାଇଁ
ବାଟୋଇ ଶୋଇବେ ମୋହରି ଛାଇ
ପଶୁ ପକ୍ଷୀର ସାହାଟି
ଗଛ ମୋର ସାଥୀଟି ।

ଅଙ୍ଗାରକାମ୍ଳ ନିଏ ମୁଁ ଟାଣି
ଅମ୍ଳଜାନ ଦିଅଇ ଆଣି
ବରଷା କରି ଥାଏଟି
ଗଛ ମୋର ସାଥୀଟି ।



ପରିବେଶର ସୁରକ୍ଷା କରେ
ପ୍ରକୃତି ଦେହେ ସୁଷମା ଭରେ
ହସଉ ମାଟି ମାଆଟି
ଗଛ ମୋର ନାଆଁ ଟି ।

ବାଆ ବତାସି ବଢ଼ି ମରୁଡ଼ି
ବିପଦ ଯେତେ ଦିଅଉ ତଡ଼ି
ତମରି ସଦା ସାହାଟି
ଗଛ ମୋର ନାଆଁଟି ।

ଯେ ଦେଶେ ଯେତେ ବଣ ଜଙ୍ଗଲ
ତାହାରି ବଡ଼େ ସେତିକି ମୂଲ
ଏକଥା ମନେ ରଖଟି
ଗଛ ମୋର ନାଆଁଟି ।



# ଲୋଡ଼ା ସେନେହ ତୋର

ରିଙ୍କି କହିଲା ମାଆ ଗୋ ମାଆ
ବଣକୁ ଯିବା ବୁଲି
ଗଛ ପତର  ପାହାଡ଼ ନଈ
ଦେଖିନି କେବେ ବୋଲି ।



ଟି.ଭି. ରେ ସତେ କେତେ ସୁନ୍ଦର
ଶାଗୁଆ ବଣ ଲତା
ମୟୂର ନାଚ କୋଇଲି ଗୀତ
ପଶୁ ପକ୍ଷୀଙ୍କ କଥା ।

ବାଘର ଖେଳ ହରିଣୀ ମେଳ
ମାଙ୍କଡ଼ ଭାଇ ଡ଼ିଆଁ
ବିଲୁଆ ରାବ ଭାଲୁ ସରାଗ
ହାତୀର ପାଣି ପିଆ ।

ଡାଳକୁ ଡାଳ ଗଛକୁ ଗଛ
ଭଳିକି ଭଳି ଜୀବ
କେତେ ମଧୁର ବଣ ରାଇଜେ
ଏକୁ ଆରେକ ରାବ ।

ମାଆଗୋ ମାଆ ଘରେ ଆମର
ଏତେ ଦରବ ଅଛି
ବଣର ପଶୁ ପାଆନ୍ତି କଣ
ଦେବାକି ନେଇ କିଛି ?

ମାଆ କହନ୍ତି ଦେଖିବ ବଣ
ସୁନା ଝିଅଟି ମୋର
ଦରବ ନୁହେଁ ବଣ ପଶୁଙ୍କୁ
ଲୋଡ଼ା ସେନେହ ତୋର ।

□



# ବଣ ପଶୁ ପକ୍ଷୀ ଆମର

ରିଙ୍କି ପିଙ୍କି ମିଳି ଆସରେ
ବଣ ରାଇଜରେ ଦେଖରେ
ବାଘ ଭାଲୁ ହାତୀ ହରୀଣ ଠେକୁଆ
ଖେଳୁଛନ୍ତି କେତେ ମଜାରେ ।





ବାଘ ମାମୁଁର ଏ ରାଇଜ
ବିଲୁଆ ନନାର ମଉଜ
ହନୁ ଅଜା ଏଠି ବଇଦ ପାଇଟି
ଜୀବନକୁ କରେ ସହଜ ।

କାଉ ଦୂତ ପଣ କରଇ
ଦୂରର ଖବର ଆଣଇ
ହାନି ଲାଭ ସବୁ ରାଇଜ ଯାକର
ଭାଲୁ ମହାମନ୍ତ୍ରୀ ବୁଝଇ ।

କୋଇଲିର ଗୀତ ଛୁଟଇ
ହରୀଣ ଆନନ୍ଦେ ନାଚଇ
ଗଧ ବାପୁଡ଼ାଟି ଅତି ହୀନିମାନ
ଭେଏଁ ଭେଏଁ ରଡ଼ି ଛାଡ଼ଇ ।



କଜଳପାତିଟି ଚତୁର
ମୟୂର ନାଚଟି ମଧୁର
ହାତୀ ସେନାପତି  ବଣ ରାଇଜରେ
କାହାକୁ ନଥାଏ ଖାତର ।

ଜଙ୍ଗଲରେ ଗଛ ପତର
ତହିଁ ପଶୁ ପକ୍ଷୀ ସୁନ୍ଦର
ତାହାଙ୍କୁ ରଖିଲେ ଜଗତ ହସିବ
ବଣ ପଶୁ ପକ୍ଷୀ ଆମର ।



# ପରିବେଶ

ଘେରି ରହିଛି ଆମକୁ ଯାହା
ସିଏତ ପରିବେଶ
ଆକାଶ ମାଟି ପାଣି ପବନ
ଜଙ୍ଗଲ ସମାବେଶ ।

କଳର ଧୂଆଁ ନର୍ଦ୍ଦମା ଜଳ
ଭଳିକି ଭଳି ଗାଡ଼ି
ଦୂଷିତ କରେ ପାଣି ପବନ
ରୋଗ ଆସଇ ମାଡ଼ି ।

ଗଛ କାଟିଲେ ମାଟିର କ୍ଷୟ
ବରଷା ପାଣି ଧାଏଁ
ନଦୀ ବଢ଼ିରେ ସବୁଜ କ୍ଷେତ
ଫସଲ ଧୋଇଯାଏ ।

ବଣ କମିଲେ କମନ୍ତି ପଶୁ
କମଇ ବର୍ଷା ପାଣି
ଗଛ ବିହୁନେ ସଂସାର ନାଶ
ରହିଛି ନୀତି ବାଣୀ ।

ପରିବେଶକୁ ନିର୍ମଳ କର
ଲଗାଅ ଗଛ ଗୋଟେ
ଅଯଥା ଧୂଆଁ ନାଳ ନର୍ଦ୍ଦମା
ରଖିବା ନାହିଁ ମୋଟେ ।



# ବଣରେ ରଜ

ବଣରେ ବାଘ ହାତୀ ବିଲୁଆ ବିଚାର କଲେ ଆସି
ରଜ ପରବ ପାଳିବେ ବୋଲି ମନ ଖୁସିରେ ବସି
ହରିଣୀ ନାନୀ ସଭାରୁ ଉଠି କହିଲା ହାତ ଯୋଡ଼ି
ବନ୍ଧୁକ ଧରି ମଣିଷ ଆଜି  ବଣକୁ ଆସେ ମାଡ଼ି
ଗଛ କାଟଇ ପଶୁ ମାରଇ କରହେ ପ୍ରତିକାର
ବେଳହୁଁ ଏହା ଚିନ୍ତା ନକଲେ ହୋଇବା ନାରଖାର ।

ବାଘ କହିଲା ରାଇଜ ସାରା ହୁକୁମ ଜାରି ରହୁ
କୌଣସି ପଶୁ ମଣିଷ ସେବା କରିବେ ନାହିଁ ଆଉ
ହାତୀ ଗୟଳ ବିଲୁଆ ଭାଲୁ ମଣିଷ ପାଖେ ଯାଅ
ବଣ ସମ୍ପଦ ସୁରକ୍ଷା ପାଇଁ ଇସ୍ତାହାର ଦିଅ
ମଣିଷ ଯଦି ନମାନେ କଥା ଜଙ୍ଗଲ ପଶୁ ଗଣ
ଏକ ହୁଅ ଏକ ହୁଅ କରିବା ଆନ୍ଦୋଳନ ।

ବାଘ ରାଜାର ଇସ୍ତାହାର ହାତୀ ବଢ଼ାଇ ଦେଲା
ବଣ ସୁରକ୍ଷା ପ୍ରସ୍ତାବ ପଢ଼ି ମଣିଷ ଖୁସି ହେଲା ।
ମଣିଷ କୁହେ ଜୀବରେ ଦୟା ପଶୁ ପକ୍ଷୀରେ ପ୍ରୀତି
ବଣ ସୁରକ୍ଷା ମୋହର ଦୀକ୍ଷା ଆମ ଦେଶର ନୀତି
ବଣ ପଶୁଏ ନିର୍ଭୟ ହେଲେ ରଜ ପରବ ପାଇଁ
ବଣ ହସିଲା ପଶୁ ପକ୍ଷୀରେ ଖୁସିର ଗୀତ ଗାଇ ।



# ଗାଇବା ବଣର ଜୟ



କେତେ ଫୁଲ ଫଳ ରଙ୍ଗ ବେରଙ୍ଗର
ହାତୀ ଭାଲୁ ବାଘ ହରୀଣ ସମ୍ବର
ଗଛ ଲତା ଘାସ ଶାଗୁଆ ପତର
ସେଇତ ଆମରି ବଣ ।

ଯାର ମାଟି ପାଣି ପବନେ ଓହଳି
ଗଛ ଲତା ଫାଙ୍କେ ଖେଳିଛି ମୁଁ ଦୋଳି
ତାଆରି ସେବାରେ ମନ ପ୍ରାଣ ଢ଼ାଳି
କରିବି ଜୀବନ ପଣ ।

ଫୁଲର ମହକେ ଚହଟେ ଦୁନିଆ
ବାଘ ବର ଏଠି ହରିଣୀ କନିଆ
ମିଠା ଫଳ ମୂଳ ଚାଲେ ଦିଆ ନିଆ
ସଦାବେଳେ ବାହାଘର
ମାଙ୍କଡ଼ ବିଲୁଆ ଶୁଆ ଶାରୀ ପିକ
ମଙ୍ଗଳ ବାଇଦ ବାଜୁଥାଏ ଦେଖ
ବଣ ପଶୁ ପକ୍ଷୀ ହୋଇଥାନ୍ତି ଏକ
ହସ ଖୁସି ଭରପୂର ।

ପଶୁ ପକ୍ଷୀ ଗଛ କେହି ନୁହେଁ ପର
ଏ ବଣ ରାଇଜ ସଭିଙ୍କର ଘର
ଭେଦ ଭାବ ଭୁଲି କରିବା ନିଜର
ନରଖ୍ ମନରେ ଭୟ
ଆମ ଏଦେଶର କୁନି ମୁନି ଆସ
ସଭିଁଙ୍କ ମନରେ ଭରିଦେବା ହସ
ଭେଦ ଭାବ ସବୁ କରିଦେବା ନାଶ
ଗାଇବା ବଣର ଜୟ ।



# ବଣରେ ଦଶହରା

ପଶୁ ପକ୍ଷୀ ଭରା ବଣ ରାଇଜ
ଦଶହରା ପାଇଁ ହୋଇଛି ସଜ
ନାନା ଜାତି ଫୁଲ ଧାଡ଼ିକି ଧାଡ଼ି
ଗଛ ଲତା ଡ଼ାଳେ ଯାଉଛି ମାଡ଼ି
ପଥର ସଜାଇ ହେଲା ପେଣ୍ଡାଲ
ସାଗୁଆ ଡାଳରେ ଦିଶେ ଉଜଳ ।



ଗୟଳ କୁକୁରା ଗଣ୍ଡା ବିଲୁଆ
କଲେ ଦୁର୍ଗାପୂଜା ବଣରେ ନୂଆ
କଦଳୀ ନଡ଼ିଆ ପଣସ କୋଳି
ସଜାଡ଼ିଲେ ଭୋଗ ଭଳିକି ଭଳି
ହନୁ ଅଜା ସାଜି ବ୍ରାହ୍ମଣ ବେଶ
ଚଣ୍ଡି ପାଠ କରେ ହୋଇ ହରଷ ।



ପୂଜା ପାଇଁ ଖୁସି ସବୁରି ମନ
ନାଚ ଗୀତ ବାଜା ପୁରିଛି ବଣ
ହାତୀ ମଉସାର ମହୁରୀ ବାଜା
ଭାଲୁ ବଜାଉଛି ତେଲିଙ୍ଗି ବାଜା
ହରିଣୀ ନାନୀଟି ଓଡ଼ିଶୀ ନାଚେ
ଠେକୁଆ ସମ୍ବର ଗଧ ତା ପଛେ ।

ପେଣ୍ଡାଲ ଭିତରେ ମାଇକ୍ ଧରି
ଗୀତ ଗାଉଛନ୍ତି କୋଇଲି ଶାରୀ
ବାଘ ମାମୁଁ ଶୁଣି ଆସିଲା ମାଡ଼ି
ପଳାଇଲେ ସବୁ ପେଣ୍ଡାଲ ଛାଡ଼ି ।



# ଜଙ୍ଗଲ ବନ୍ଦ



ପରିବେଶ ପାଇଁ ମଣିଷ ସମାଜ
ଢ଼ାଳନ୍ତି ଆଖିରୁ ଲୁହ
ଏଇ କଥା ଜାଣି ବାଘ ମାମୁଁ ମୁହେଁ
ଉକୁଟି ଉଠଇ କୋହ ।

ପଶୁ ପକ୍ଷୀ  ଡାକି ସଭା ବସାଇଲା
ପରିବେଶ ରକ୍ଷା ପାଇଁ
ପରିବେଶ ରକ୍ଷା ଆମରି ସୁରକ୍ଷା
କହିଲା ଜଙ୍ଗଲ ସାଇଁ ।

ବିଲୁଆ କହିଲା ମଣିଷ ପାଇଁ କି
ଏ ପ୍ରକୃତି ନଷ୍ଟ ହେଲା
କୁମ୍ଭୀର କାନ୍ଦଣା କାନ୍ଦୁଛି ମଣିଷ
କରି ପରିବେଶ ପାଳା ।

ପରିବେଶ ବୋଲି କିଛି ନାହିଁ ଭାଇ
ଆମେ ନରହିଲେ ସୁଖେ
ବଣ ଜଙ୍ଗଲର ଅବସ୍ଥା ଦେଖିଲେ
ମନ ମରିଯାଏ ଦୁଃଖେ ।

ମାଙ୍କଡ଼ କହିଲା ଗଛ ଉଜୁଡ଼ିଲା
ଡେଇଁବାକୁ ନାହିଁ ଜାଗା
ନିଜ ସ୍ୱାର୍ଥ ପାଇଁ ମଣିଷ ସଭ୍ୟତା
ଆମକୁ ଦେଇଛି ଦଗା ।

ନିରୀହ ଗଛଟି ମୁଣ୍ଡ ଟୁଙ୍ଗରିଲା
ମଣିଷର ଭଲ ପାଇଁ
ପତ୍ର ଫୁଲ ଫଳ ମହୁ ଝୁଣା କାଠ
ଦେଉଛି ମୁହିଁ ଯୋଗାଇ ।



ତଥାପି ସରେନା ମଣିଷର ଲୋଭ
ବସାଇଛି ମୂଳେ ଚୋଟ
ଏଥିକି ବିଚାର କର ପଶୁ ରାଜ
ଦେଖାଅ ବଞ୍ଚିବା ବାଟ ।

ପଶୁ ପକ୍ଷୀ ଗଛ ନିଜ ନିଜ ଦୁଃଖ
ବଖାଣିଲେ ବିନୟରେ
ଶୁଣି ପଶୁରାଜ ପ୍ରଜାଙ୍କର ଦୁଃଖ
ଗରଜିଲା ରୋଷଭରେ ।

ପରିବେଶ ଦିନ ପାଳିବା ବଣରେ
ନ କାଟିବା କେହିଗଛ
ଗଛ ଲଗାଇବା ବଣରେ ବାଡ଼ିରେ
ସବୁ କରି ଦେଇ ପଛ ।

ନ ତାଡ଼ିବା ମାଟି ପଥର ପାହାଡ଼
ଚେର ମୂଳ ଗଛଡାଳ
ଦରକାର ବିନା ଅଧିକ ଲୋଭ ହିଁ
ହୋଇଛି ଆମରି କାଳ ।

ମାରୁଛି ପଶୁଙ୍କୁ କାଟୁଛି ବଣକୁ
ମଣିଷର ବୁଦ୍ଧି ମନ୍ଦ
ମଣିଷ କାମକୁ ପ୍ରତିବାଦ କରି
ପାଳିବା ଜଙ୍ଗଲ ବନ୍ଦ ।





# ବଣରେ ଗହ୍ମା ପୁନେଇ

ଭାଇ ଭଉଣୀ ସେନେହ ଡ଼ୋର
ଗହ୍ମା ପୁନେଇ ସାକ୍ଷୀ
ଭାଇ ହାତରେ ଭଉଣୀ ବାନ୍ଧେ
ମମତା ଭରା ରାକ୍ଷୀ ।

ବଣ ରାଇଜେ ପଶୁ ପକ୍ଷୀଏ
ବିଚାର କଲେ ବସି
ରାକ୍ଷୀ ବାନ୍ଧିବେ ପରବ ପାଳି
ପିଠା ପଣାରେ ଭାସି ।

ହରିଣୀ କୁହେ ବାଘ ମୋ ଭାଇ
ସାରୀ କହିଲା ଶୁଆ
ହାତୀ ସିଂହକୁ ଗଣ୍ଡା ଭାଲୁକୁ
କୋଇଲି ବଣ ଭୁଆ ।



ନିଜ ନିଜର ଭାଇ ହାତରେ
ବାନ୍ଧିଲେ ରାକ୍ଷୀ ଡ଼ୋର
ଭାଇ ଆମର ସାହା ହୋଇବ
ଆସୁ ବିପଦ ଘୋର ।

ହନୁ ବୁଢ଼ାଟି ପାଚିଲା ଫଳ
ସଭିଙ୍କୁ ନେଇ ଦେଲା
ପିଠାତ ନାହିଁ ଫଳ ମୂଳରେ
ପୁନେଇ ମାନ ଭଲା ।

ବାଘ ସିଂହକୁ ଭାଇ କରିଲେ
ଜଙ୍ଗଲେ ନାହିଁ ଭୀତି
ଚଳିବା ଆମେ ନିଜର ପରି
ମାନି ଜଙ୍ଗଲ ନୀତି ।

ମଣିଷ ପାଇଁ ଭୟ ମନରେ
ରହିଛି ସବୁଦିନ
ମଣିଷ ହାତେ ରାକ୍ଷୀ ବାନ୍ଧିବା
ରଖିବା ଆମ ମାନ ।



ବାଘ ହରୀଣ ହାତୀ ବିଲୁଆ
ମାଙ୍କଡ଼ ସାରୀ ଶୁଆ
ସଜ ହୋଇଲେ ପୁନେଇ ପାଳି
ଯିବାକୁ ପାଖ ଗାଆଁ ।



ଗାଆଁ ସ୍କୁଲରେ ହେଉଛି ସଭା
ମେହେର କବି ପାଇଁ
ପିଲାଠୁ ବୁଢ଼ା ରୁଣ୍ଡ ସଭିଏଁ
ପୁନେଇ ପିଠା ଖାଇ ।

ବଣ ପଶୁଏ ପହଞ୍ଚିଗଲେ
ରାକ୍ଷୀ ହାତରେ ଧରି
ପିଲାଏ ଯେତେ ମାରିଲେ ତାଳି
ସଭା ଉଠିଲା ପୂରି ।



ବାଘ କହିଲା ମଣିଷ ପଶୁ
ସଭିଏଁ ଭାଇ ଭାଇ
ଆସିଛୁ ଆମେ ତମ ପାଖକୁ
ପୁନେଇ ରାକ୍ଷୀ ନେଇ ।

ପଶୁ ପକ୍ଷୀଏ ବାନ୍ଧିଲେ ରାକ୍ଷୀ
ପିଲାମାନଙ୍କ ହାତେ
ପିଲାଏ ଦେଲେ ରାକ୍ଷୀ ପିନ୍ଧାଇ
ପଶୁ ପକ୍ଷୀଙ୍କ ମାଥେ ।

ସଭାରେ ମାଷ୍ଟ୍ରେ ଭାଷଣ ଦେଲେ
ଗଙ୍ଗାଧରଙ୍କ ପାଇଁ
ମଣିଷ ପଶୁ ପ୍ରଭେଦ କେବେ
କବି ଦେଖଇ ନାହିଁ ।

ପଶୁର ଜୟ ବଣର ଜୟ
ସୃଷ୍ଟିର ହେଉ ଜୟ
ମେହେର କବି ଯାଇଛି ଗାଇ
ସୃଷ୍ଟି ଅମୃତ ମୟ ।



# ଜଙ୍ଗଲରେ ଭୋଟ ପ୍ରଚାର

ବାଘ ମାମୁଁ ଭାରି ଖୁସି ଏଥର ଜଙ୍ଗଲେ
କହେ ବୁଝାଇ
ନୂଆ ରାଜା ବାଛ ନିର୍ବାଚନ କରି
ଦେଉଛି ଭାଇ ।

ବୟସ ହୋଇଗଲା ଅବସର ନେବି
ବିଦାୟ ନିଅ
ବିଲୁଆ କହିଲା ଭୋଟ କରିଦେଲେ
ବିଦାୟ ନିଅ ।



ବାଘ ବସାଇଲା ଭୋଟ କମିଶନ
ଭାଲୁକୁ ଧରି
ଆସନ୍ତା ମାସରେ ନିର୍ବାଚନ ହେବ
ଘୋଷଣା କରି ।

ତୃଣଭୋଜୀ ଦଳ ହାତୀକୁ ବାଛିଲେ
ନିଜର ନେତା
ବାଘ ବିହୁନରେ ମାଂସ ଭୋଜୀ ନେତା
ହୋଇଲା ଚିତା ।

ସରୀସୃପ ନେତା ଅଜଗର ହେଲା
ଭୋଟ ପାଇଁ କି
ମୟୂରକୁ ପକ୍ଷୀ ସମାଜ ବାଛିଲେ
ଗୀତ ଗାଇବି ।



ହାତୀ ଅଜଗର ଚିତା ମୟୂରଙ୍କ
ଭୋଟ ହୋଇବ
ବେଶି ଭୋଟ ଯାର ବଣରାଜ ପଦ
ସିଏ ପାଇବ ।

ନିଜ ନିଜ ନେତା ଜିତିବା ପାଇଁ କି
ପଶୁ ସକଳ
ଭୋଟ ପ୍ରଚାରରେ ଲାଗିଲେ ବଣରେ
ଏକୁଟି ଦଳ ।



ଭୋଟ ଶେଷ ହେଲା ବାଘ ଭାଲୁ ଦୁହେଁ
ଗଲେଣି ବସି
କିଏ କେତେ ଭୋଟ ପାଇଛି ଦେଖନ୍ତି
ଉଭୟେ ମିଶି ।

ହାତୀ ଅଜଗର ଚିତା ମୟୂରର
ଭୋଟ ସମାନ
କିଏ ରାଜା ହେବ ଭାଳନ୍ତି ସଭିଏଁ
ବିକଳ ମନ ।

ବାଘ ମାମୁଁ ଉଠି କହିଲା ସଭିଙ୍କୁ
ନକର ଦୁଃଖ
ଭେଦ ଭାବ ଭୁଲି ବଣ ରାଇଜର
ବଢ଼ାଅ ସୁଖ ।

କିଏ ମାଂସଭୋଜୀ କିଏ ତୃଣଭୋଜୀ
ଭାବିଲେ ମନେ
ବଣ ରାଇଜର ପତନ ହୋଇବ
ନିଶ୍ଚୟ ଦିନେ ।

ଭୋଟ କରି ଯାହା ଗୋଷ୍ଠୀ କଳହରେ
ଭାଙ୍ଗିବ ବଣ
ମାତୃଭୂମି ପାଇଁ ଭୋଟ ନୁହେଁ କର
ଜୀବନ ପଣ ।



# ବଣରେ କ୍ରିକେଟ ଖେଳ

ହାତୀ ଯାଇଥିଲା ସହର ବୁଲି
ନୂଆ ଖେଳ ଦେଖି ଆସିଲା ଚାଲି
କ୍ରିକେଟ ତା ନାଆଁ ଖେଳର ରଙ୍ଗ
ବଣରେ ଖେଳିବା ହୋଇବ ମଜା ।



ହାତୀ କଥା ଶୁଣି ପଶୁଏ ଖୁସି
କ୍ରିକେଟ ଖେଳିଲେ ସଭିଏଁ ମିଶି
ହାତୀ ଓ ମାଙ୍କଡ଼ ବୋଲିଙ୍ଗ୍ କଲେ
ହରୀଣ ସମ୍ବର ବେଟିଙ୍ଗ୍ ନେଲେ ।



ଓ୍ଵିକେଟ କିପର ହୋଇଲା ବାଘ
ଖେଳ ଚଳାଇବା ସିଂହର ଭାଗ
ଫିଲ୍ଡିଙ୍ଗ୍ କରିଲେ ପକ୍ଷୀଏ ମିଶି
କ୍ରିକେଟ ଖେଳରେ ସଭିଏଁ ଖୁସି ।



ହାତୀ ପକାଇଲା ସ୍ପିନ୍ ଗୁଗୁଲି
ସମ୍ବର ମାରଇ ରନ୍ ଧପାଲି
ମାଙ୍କଡ଼ର ବଲ୍ ଆସଇ ଧୀରେ
ହରୀଣ ଚଉକା ଛଅକା ମାରେ ।

ବିଲୁଆ ବେଟିଙ୍ଗ୍ ସବୁଠୁ କଡ଼ା
ମାଇଲା ଚଉକା ଯୋଡ଼ାକୁ ଯୋଡ଼ା
ସେଞ୍ଚୁରୀ ପୁରାଇ ବାହାବା ନେଲା
ବାଘ ଦ୍ଵାରା ଷ୍ଟମ୍ପ ଆଉଟ୍ ହେଲା ।





ସମ୍ବରର କେତେ ଶୁଆ ଧରିଲା
ବିଲୁଆ ନନାର ପାଲି ପଡ଼ିଲା
ହରୀଣ ହୋଇଲା ରନ୍ ଆଉଟ
ଗଣ୍ଡା ପଶି ଆସି ଧରିଲା ବେଟ ।



ହାତୀ ବଲ ବାଜି ଶିଙ୍ଗ ଭାଙ୍ଗିଲା
ଯନ୍ତ୍ରଣାରେ ଗଣ୍ଡା ଚିତ୍କାର କଲା
ବେଟ ମାରି ଦେଲା ୱିକେଟ୍ ଭାଙ୍ଗି
ସିଂହ ଏମ୍ପାୟାର ଉଠିଲା ରାଗି ।

କହିଲା ଅଭ୍ୟାସ ନକରି ଖେଳ
ସେଥିପାଇଁ ତୋର ହୋଇଲା କାଳ
ନିଷ୍ଠା ରଖି ଯଦି ଅଭ୍ୟାସ କର
ହୋଇବ ସଚିନ୍, ଗାଭାସ୍କର ।

ରାଗ ନୁହେଁ ଖେଳ ମମତା ଭରା
ଖେଳେ ବନ୍ଧା ପରା ଦୁନିଆ ସାରା
ଖେଳ ଶିକ୍ଷା ଦିଏ ବନ୍ଧୁତା ପ୍ରୀତି
ଜଗତ କଲ୍ୟାଣ ଖେଳର ନୀତି ।



# ବଣରେ ବାହାଘର



ଶିମିଳି ପାଇଁ ହସେ ସାଜ ସଜ୍ଜାରେ
ବଣରେ ବାହାଘର ହେବ ମଜ୍ଜାରେ
କନ୍ୟା ବେଶରେ ସାଜି ହରିଣୀ ନାନୀ
ବେଦିରେ ବସିଅଛି ଦେଇ ଓଢ଼ଣୀ ।

କନ୍ୟା ପିତା ରୂପରେ ବସିଛି ବାଘ
ପୁରୋହିତ ପଦଟି ହାତୀର ଭାଗ
ମଧ୍ୟପ୍ରଦେଶ ପଶୁ ବର ଯାତ୍ରୀରେ
ବାରାସିଂଘାକୁ ଧରି ବର ରୂପରେ ।



ରୋଷଣୀ ବାଣ ବାଜା ବଜାଇ ଉଚେ
କମ୍ପାନ୍ତି ବଣ ଭୂଇଁ ଡ଼ିସ୍କୋ ନାଚେ
ବାହାଘରକୁ ଡକା ଅନେକ ପଶୁ
ଆଡ଼ମ୍ବରେ ଆସିଲେ ବିଭିନ୍ନ ଦେଶୁ ।



ଅଷ୍ଟ୍ରେଲିଆ କଙ୍ଗାରୁ ଆସାମ ଗଣ୍ଡା
ଆଫ୍ରିକା ଜେବ୍ରା ହାତୀ ଚୀନର ପାଣ୍ଡା
ଚିଲିକା ପକ୍ଷୀକୁଳ ମାନସ ହଂସ
ଭରତପୁରୁ ଉଡ଼ିଆସେ ସାରସ ।

ଗୁଜୁରାଟର ସିଂହ ରେୱାର ବାଘ
ହିମାଳୟ ପ୍ରଦେଶୁ କସ୍ତୁରୀ ମୃଗ
ପେଙ୍ଗୁଇନ୍ ଆସିଛି ଆଣ୍ଟାର୍କଟିକା
ନିଉଜିଲାଣ୍ଡ କିୱି ଚାଲି ଚାଲିକା ।

ଭିତର କନିକାରୁ ବଉଳା ଆସି
ଘଡ଼ିଆଳ ଗୋମୁହାଁ ଗଲେଣି ମିଶି
ପଶୁ ପକ୍ଷୀ ସକଳ ଦେଶୀ ବିଦେଶୀ
ଶିମିଳି ପାଳେ ଜମା ହୋଇଲେ ଆସି ।



ବରପକ୍ଷର ମାମୁଁ କାହ୍ନା ଗୟଳ
ଯଉତୁକ ପାଇଁକି କରିଲାଗୋଳ
ବରପିତା ସମ୍ଭର ଉଠିଲା ରାଗି
ଇଜ୍ଜତ ଗଲାସିନା ଯୌତୁକ ମାଗି ।

ବେଦୀରୁ ପୁରୋହିତ ହାତୀ ଉଠିଲା
ଯଉତୁକ ବ୍ୟାଧିକୁ ନାଶ କହିଲା
ମଣିଷ ହୀନିମାନ ମାଗେ ଯୌତୁକ
ନାରୀ ରତନେ ଦିଏ ଦୁଃଖ ଅଧିକ ।





ବଣରେ ନାହିଁ ନାରୀ ପୁରୁଷ ଭେଦ
ନାରୀର ନିର୍ଯ୍ୟାତନା ବଢ଼ାଏ ଖେଦ
ଯଉତୁକ ହଟାଅ ଆସୁ ସମତା
ବଣ ରାଇଜେ ବଢୁ ପ୍ରୀତି ମମତା ।

ହରିଣୀ ହେବ ତୁମ ଜଙ୍ଗଲ ରାଣୀ
ଯଉତୁକ କରିବ ମର୍ଯ୍ୟାଦା ହାନୀ
ହାତୀ କଥାରେ ପଶୁ ପକ୍ଷୀଏ ଖୁସି
ପାଳିଲେ ବାହାଘର ଆନନ୍ଦେ ମିଶି ।



# ବଣ ଅଟଇ ସେହିରେ

ସ୍ନେହ ମମତା ଥାଏ ଯେଉଁଠି
ସବୁ ଦେବତା ଠୁଳ ସେଇଠି
ଗଛ ପତର ଲତା ଗହଳ
ବାଘ ମିରିଗ ପଶୁଙ୍କ ଖେଳ
ଝରଣା ଯାଏ ବହିରେ
ବଣ ଅଟଇ ସେହିରେ ।



ସିଂହ ସମ୍ବର ହୁଅନ୍ତି କଥା
ଜଙ୍ଗଲ ବୁଝେ ସଭିଙ୍କ ବ୍ୟଥା
ଭାଲୁ ଗୟଳ ହନୁ ଝିଙ୍କାରୀ
ହଂସ ସାରସ କୋଇଲି ସାରୀ
ଗୀତ ଯାଆନ୍ତି ଗାଇରେ
ବଣ ଅଟଇ ସେହିରେ ।

ଉଚ୍ଚ ପର୍ବତ ଝରଣା ଜଳ
ଗଛ ଲତାର ସୁଆଦ ଫଳ
ଫୁଲେ ବସଇ ପତଙ୍ଗାପତି
ଜୁଳୁଜୁଳିଆ ଦେଖାଏ ରାତି
ଖୁସି ଭରିଛି ଯହିଁରେ
ବଣ ଅଟଇ ସେହିରେ ।

ଶିଶୁ ପରିକା ସରଳ ଯିଏ
ସଂସାର ସାରା ଅମୃତ ଦିଏ
ପରିବେଶର ହରଇ ଦୁଃଖ
ମଣିଷ ପ୍ରାଣେ ହରଇ ସୁଖ
ତା' ସମ କେହି ନାହିଁରେ
ବଣ ଅଟଇ ସେହିରେ



# ଗଛ ଦେବତା

ଦିଅଇ ଯିଏ ଦେବତା ସିଏ
ସଂସାର ଦୁଃଖ ହରେ
ସାରା ଜଗତ ପୂଜଇ ତାକୁ
ଅନ୍ତର  ଭକ୍ତି ଭରେ ।



ପୂଜାରେ ତା'ର ଲୋଡ଼ଇ ନାହିଁ
ନଡିଆ ଧୂପ ଧୂଆଁ
ହୁଅଇ ଶାନ୍ତି ପାଇଲେ ସିଏ
ମମତା ଭରା ଛୁଆଁ ।

ଦେଇଛି ଫଳ ଦେଇଛି ପତ୍ର
ଦେଇଛି ସବୁ ଅଙ୍ଗ
ତାହାରି ପାଇଁ ମଣିଷ ଜାତି
ଦେଖାଏ କେତେ ରଙ୍ଗ ।

ସିଏ ଦେଇଛି ଶୁଦ୍ଧ ପବନ
ସବୁଜ ପରିବେଶ
ବରଷା ଧାର ନଇର ଜଳ
ଜୀବ ଜଗତେ ବାସ ।



ମନ୍ଦିରେ ଥାଇ ଜଡ଼ ଦେବତା
ଦେଖଇ ଖାଲି ଦୁଃଖ
ସାରା ସଂସାରେ ଗଛ ଦେବତା
ବିତରି ଥାଏ ସୁଖ ।

ଯେତେ ଦେବତା ଜାଣିଛ ପିଲେ
କହିଲ ଦେଖି କିଏ
ଗଛ ପରିକା ଜୀବନ ଦେଇ
ଜଗତ ଦୁଃଖ ନିଏ ।

# ଟିକି ଚାରାଟି

ଟିକି ଚାରାଟି ଚାହିଁ ତରାଟି
ହସି ହସିକା କହିଲା
ମୋ ଲାଗି ସିନା ସଂସାର ସୁନା
ପରିବେଶଟି ହସିଲା ।



କହିଲା କୁନା କରୁନି ମନା
ଦୁନିଆର ସାର ତୁହି
ତୋହରି ପାଇଁ ଧରା ହସଇ
ଶାଗୁଆ ପଣତ ନାଇ ।

ଗଛ ବଢ଼ିଲେ ବଣ ହସିଲେ
ଧରା ଦିଶଇ ଯତନ
ଗଛ ସମାଜ ପଶୁ ରାଇଜ
ସାରା ବିଶ୍ୱର ରତନ ।

ଟିକି ଚାରାଟି ଚାହିଁ ତରାଟି
ହସି ହସିକା ଲୋଟିଲା
ଆଉଁସି ତାର କୁନି ପତର
ଖେଳରେ କୁନା ମଜିଲା ।



କହିଲା କୁନା ତୋହରି ବିନା
ସଂସାର ରହେ ନାହିଁଟି
ଗଛ ଆମର ଅତି ନିଜର
ତା ପରି ନାହିଁ କେହିଟି ।

ଚାରାଟି ବଢ଼ି ଦିଅଇ ଗଢ଼ି
ବିରାଟ ବଣ ରାଇଜ
କୁନା ବଢ଼ିବ ଦେଶ ବଢ଼ିବ
ଶାନ୍ତି ମୈତ୍ରୀର ସମାଜ ।



# ଫୁଲଝରି

ଧଳା କଳା ବାଇଗଣୀ
ହଳଦିଆ ନାଲି ନେଳି
ହସ ହସ ବଣ ଫୁଲ
କେତେ ରଙ୍ଗ କେତେ ଭଙ୍ଗି ।

ଛୋଟ ଛୋଟ ଅତି ଛୋଟ
ମାଡ଼ିଚାଲେ ଧରାତଳ
ତା' ଉପରେ ପାଦଦେଲେ
ନଇଁଯାଏ ଘାସଫୁଲ ।



ଧଳା ଧଳା ରୂପ ତାର
ରାତି ହେଲେ ଫୁଟେ ସିଏ
ଗଙ୍ଗଶିଉଳି ଟଗର
ମଲ୍ଲୀଫୁଲ ସରି କିଏ ।

ହଳଦିଆ ଗୁରୁଗୁରୁ
ନୂଆବୋହୂ ମୁହଁପରି
ଚଂପା ଫୁଲ ଆକାଶିଆ
ସୁନାରୀର ଫୁଲଝରି ।



ଖରାଦିନ ଖରା ବାଜି
ଗଛ ଦେହୁ ପତ୍ର ଝରେ
ଲାଲ ଲାଲ ନିଆଁ ପରି
ପଳାଶର ହସ ଝରେ ।

ଧଳା କଳା ନାଲି ନୀଳ
କେତେ ଫୁଲ କେତେ ରଙ୍ଗ
ଗଛେ ଗଛେ ହସ ଭରା
କେତେ ସଜା କେତେ ଢ଼ଙ୍ଗ ।

ଆମେ ପିଲା ଫୁଲ ପରି
ହସୁଥିବା କରି କିରି
ବିଞ୍ଚିଗିବା ଦୁନିଆରେ
ମମତାର ଫୁଲଝରି ।





ଫଣୀନ୍ଦ୍ର ଭୂଷଣ ନନ୍ଦ

ଜନ୍ମ : ୩୦-୧୨-୧୯୫୯

କବିଙ୍କର ଏହା ପ୍ରଥମ ଶିଶୁ କବିତା ସଂକଳନ । ଶିଶୁମାନଙ୍କ ଗହଣରେ ସମୟ କଟେଇବା କବିଙ୍କର ପ୍ରଧାନ ସଉକ । ଶିଶୁମାନଙ୍କୁ ବଣ ଓ ବଣର ପଶୁ ପକ୍ଷୀଙ୍କ ସହିତ ପରିଚିତ କରିବା ପାଇଁ ଏ ସଂକଳନର କବିତା ଗୁଡିକ ଉଦ୍ଦିଷ୍ଟ । କବିତା ସମୂହ ପୂର୍ବରୁ କଣ୍ଢେଇ, ନନ୍ଦନ କାନନ,ଝୁମୁକା, ସୁନାପିଲା, ବିଲୁଆ ନନା, କାଳିଆ, ଶାମୁକା ପ୍ରଭୃତି ପତ୍ରିକାରେ ପ୍ରକାଶିତ ।

□□

*କବିଙ୍କ ଅନ୍ୟାନ୍ୟ ପ୍ରକାଶିତ ପୁସ୍ତକ :*

୧-ନିଶ୍ବଦ ଆକାଶର ଡାକ (୧୯୯୩)

୨-ଅରଣ୍ୟର ଡାକ (୨୦୦୦)

୩-ସମ୍ବଲପୁର ହିତୈଷିଣୀ :ଏକ ଅଧ୍ୟୟନ (୨୦୦୨)

□□